# SIDHIRASTU

A Hand-book for the use of the Teachers of Infant Standard to teach three R's on scientific method

BY

**Babu Narayan Bohidar,**

*Deputy Inspector of Schools,*

*Kalahandi State*



ଶିଶୁଶ୍ରେଣୀ ଶିକ୍ଷକ-ସହଚର

( ପଠନ, ଲିଖନ ଓ ଗଣିତ ଶିକ୍ଷାପାଇଁ । )

ଶ୍ରୀ ନାରାୟଣ ବହିଦାର

ପ୍ରଣୀତ ଓ ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

Printed by V. Kar

THE UTKAL SAHITYA PRESS

**CUTTACK.**

**1920.**



*Price 8 annas.* ମୂଲ୍ୟ ଟ • ୪ ଆଠ ଅଣା ।

# PREFACE.

To meet the long-felt want of a Hand-Book for teachers of the infant class to guide them in the up-to-date method of teaching correct pronunciation of alphabets, reading and writing of them, the author has undertaken the publication of the present book written by him on the 'Natural Method' accepted by most eminient educationists in Orissa.

The method indicated here is that of (i) Speech, (ii) Reading and (iii) Writing: The first precedes the second which in its turn precedes the third. According to this principle a child may learn to speak correctly a hundred words, he may read some fifty and write about a dozen. The author has put this into practice in some of the schools under his charge and found the results satisfactory. He was thus encouraged to publish the book.

The book is devoted to the following chapters :—

I. To train up the vocal organs commencing from the lip.

II & III. To teach reading by means of vocal and occular exercises, the letters, in large types, being repeated often to be familiar to the eyes.

IV & VIII. To form words and conjunct consonents,

V. Letters in order in vogue.

VI. To teach writing mechanically adjusting 13 circular cards for which copious instructions are provided.

VII & IX. To teach 'Numbers' basing on the Method of proceeding from "the known to the unknown."

As the Method of teaching 3 R's required for the initiation has been treated in detail and the way shown to the teacher is such as can not tail to arouse the curiosity of the child and to quicken and concentrate his attention, it is hoped that the book may prove of help to teachers and parents in active charge of the education of the little children.

Any suggestions from those experienced in science and art of teaching will be welcome.

NARAYAN BOHIDAR.

# ଭୂମିକା ।



ଆଜ ସେ କାଳ ନାହିଁ, ଯେଉଁ କାଳରେ ଅଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ଅବଧାନମାନେ କୌଣସି ଲୋକର ଦାଣ୍ଡ ପିଣ୍ଡାରେ ବସି ବେତ-ବାଉଁଶିକା ଦେଖାଇ କୋମଳମତି ଶିଶୁଙ୍କୁ "ଅ ଠାରୁ କ୍ଷ" ପର୍ଯ୍ୟନ୍ତ ପାଟେଖାଡ଼ି ଧାଡ଼ି ଲେଖି ଦେଇ ଅକ୍ଷରଗୁଡ଼ିକ କୌଣସି ପ୍ରକାରେ ଶିଶୁର କଣ୍ଠସ୍ଥ କରାଇବା ଉଦ୍ଦେଶ୍ୟ ରଖି ନୀରସ ଶିକ୍ଷା ଦେଉଥିଲେ ଏବଂ ଯେଉଁ କାଳରେ ପକ୍ଷାନ୍ତରରେ ଶିଶୁମାନେ କୃତାନ୍ତ-ପ୍ରତିମ ଅବଧାନଙ୍କର ବ୍ୟବହାରଯୋଗୁଁ ଚାଟଶାଳୀକୁ ଚାଟଶାଳୀ ନ ମଣି ଯମପୁର ବୁଝି ପାଠ ପଢ଼ିବାକୁ ଏକାନ୍ତ ବିମୁଖ ହେଉଥିଲେ ।

ଆଜ ଯେଉଁ ଶିକ୍ଷକ କ୍ରୀଡ଼ା-କୌତୁକ ଛଳରେ ଶିଶୁମାନଙ୍କର ଅନ୍ତର୍ନିହିତ ବୃତ୍ତିନିଚୟର ପୂର୍ଣ୍ଣ ବିକାଶ କରାଇବା ଉଦ୍ଦେଶ୍ୟରେ ବୈଜ୍ଞାନିକ ପଦ୍ଧତି ଅବଲମ୍ବନ କରି, ଶିଶୁର କ୍ରୀଡ଼ା-ସଙ୍ଗୀରୂପେ ଶିକ୍ଷା କାର୍ଯ୍ୟରେ ପ୍ରବେଶ କରନ୍ତି, ସେ ଶିକ୍ଷକହିଁ ଶିକ୍ଷକପଦବାଚ୍ୟ । ଏଭଳି ଶିକ୍ଷକଙ୍କର ସାହାଯ୍ୟ ସକାଶେ ପୁସ୍ତକର ଏକାନ୍ତ ଅଭାବ ଥିବାରୁ ସେହି ଅଭାବ ପୂରଣାର୍ଥେ "ସିଦ୍ଧିରସ୍ତୁ" ପ୍ରକାଶିତ ହେଲା ।

ସ୍ୱର-ବିଜ୍ଞାନ ଅବଲମ୍ବନ କରି ବର୍ଣ୍ଣମାଳାର ସ୍ୱର ଶିକ୍ଷାର କ୍ରମିକତା, ଚକ୍ଷୁ ଏବଂ ଜିହ୍ୱା ପ୍ରୟୋଗରେ ବର୍ଣ୍ଣଶିକ୍ଷା, ବୁଦ୍ଧି ପରିଚାଳନପାଇଁ ଶବ୍ଦ ଗଠନାର୍ଥ ଅକ୍ଷରଯୋଜନକ୍ରୀଡ଼ା, ଦେହବିଜ୍ଞାନ ଅବଲମ୍ବନ କରି କ୍ରୀଡ଼ନକ ସାହାଯ୍ୟରେ ଯନ୍ତ୍ରଚାଳନବତ୍ ବର୍ଣ୍ଣଲିଖନ ଶିକ୍ଷା, ସଂଖ୍ୟାଶିକ୍ଷାର ଅଭ୍ରାନ୍ତ ସୂତ୍ର, ଏ ସବୁ

ବିଷୟ ପ୍ରତି ସମ୍ୟକ୍ ଦୃଷ୍ଟି ଦିଆ ଯାଇଅଛି । ମୁଁ ଏହି କ୍ଷୁଦ୍ରାବୟବ କୌତୁକ-ପ୍ରଦ ବହି ଖଣ୍ଡିକୁ ଶିଶୁ-ଶିକ୍ଷକମାନଙ୍କର ଅଭିନବ ଶିକ୍ଷାଦାନୋପଯୋଗୀ କରିବାପାଇଁ ଯଥାସାଧ୍ୟ ଚେଷ୍ଟା କରି କେତେଦୂର କୃତକାର୍ଯ୍ୟ ହୋଇଅଛି, ତାହା ଅନୁଭବୀ ଶିକ୍ଷକବର୍ଗଙ୍କର ବିବେଚ୍ୟ । ସେମାନଙ୍କ ନିକଟରେ ମୋର ଏହି ନିବେଦନ ଯେ, ଦ୍ୱିତୀୟ ସଂସ୍କରଣ ବେଳକୁ ତ୍ରୁଟୀ ପ୍ରମାଦ ପ୍ରଭୃତି ସଂଶୋଧନକଲେ ,ପୁସ୍ତକର ଉତ୍କର୍ଷ ସାଧନାର୍ଥ ହିତୈଷିବର୍ଗ ଯେଉଁ ଉପଦେଶ ଦେବେ, ତାହା ସାଦରେ ଗୃହୀତ ହେବ ।

ଉପସଂହାରରେ ବକ୍ତବ୍ୟ ଏହି ଯେ, ଉତ୍କଳର ଶିକ୍ଷାଗୁରୁ ୰ମଧୁସୂଦନ ରାଓ ପ୍ରମୁଖ ସୁଧୀବର୍ଗ ଏହି ପୁସ୍ତକନିହିତ ପ୍ରଣାଳୀକୁ ସର୍ବାନ୍ତଃକରଣରେ ଅନୁମୋଦନ କରିଅଛନ୍ତି ।

ବେଲଖଣ୍ଡୀ,
ତା ୧୮. ୨. ୨୦ ।
(ଶିବରାତ୍ରି)

ଶ୍ରୀ ନାରାୟଣ ବହିଦାର ।





## ପ୍ରଥମ ସୋପାନ ।

### ସ୍ୱର ଶିକ୍ଷା ।

ଶିଶୁ ସ୍ୱର ଉଚ୍ଚାରଣ କରି ପାରିବା ସମୟଠାରୁ ଖଡ଼ି ଧରିବା ପର୍ଯ୍ୟନ୍ତ ତାହା ପକ୍ଷରେ ସ୍ୱର ଶିକ୍ଷାର ଉତ୍କୃଷ୍ଟ ସମୟ, ଏହି ସମୟ ମଧ୍ୟରେ ପିତା ମାତାର ଭାଷା ଯେ ସମସ୍ତ ସ୍ୱରମାନଙ୍କରେ ଗଠିତ ହୋଇଅଛି ସେ ସମସ୍ତ ସ୍ୱରମାନ ଶିକ୍ଷା ଦେବା ଉଚିତ; କିନ୍ତୁ ଏହା ଶିକ୍ଷିତା ମାତା ଅଭାବରେ ଏ ଦେଶରେ ସମ୍ଭବ ନ ଥିବାରୁ ସାଧାରଣତଃ ଶିଶୁ ବିଦ୍ୟାଳୟକୁ ଆସିଲା ମାତ୍ରେ ଏହାହିଁ ଶିକ୍ଷକ ତାକୁ ସର୍ବପ୍ରଥମେ ଶିକ୍ଷା ଦେବେ । ଏହି ସମୟ ମଧ୍ୟରେ ଲେଖା ଶିକ୍ଷାର ପ୍ରୟାସ କରିବା ବୃଥା । ସ୍ୱର ଶିକ୍ଷାର କ୍ରମିକତା ରହିବ ।

### ସ୍ୱର—ସୌପାନିକ ରୀତି ତଳେ ପ୍ରଦତ୍ତ ହେଲା ।

୧ ଓଷ୍ଠ୍ୟ— ପ ଫ ବ ଭ ମ ଉ ଊ

୨ ଦନ୍ତ୍ୟ— ତ ଥ ଦ ଧ ନ ଌ ଲ ଳ ସ

୩ ତାଲବ୍ୟ— ଚ ଛ ଜ ଝ ଞ ଇ ଈ ଯ ୟ ଶ

୪ କଣ୍ଠ୍ୟ— କ ଖ ଗ ଘ ଙ ଅ ଆ ହ

୫ ମୂର୍ଦ୍ଧନ୍ୟ— ଟ ଠ ଡ ଢ ଣ ଋ ର ଷ

୬ ଦନ୍ତୋଷ୍ଠ୍ୟ— ବ
୭ କଣ୍ଠୋଷ୍ଠ୍ୟ— ଓ ଔ
୮ କଣ୍ଠତାଲବ୍ୟ— ଏ ଐ
୯ କଣ୍ଠମୂର୍ଦ୍ଧନ୍ୟ— ଝ
୧୦ ଅଯୋଗବାହ— ଂ ଃ ଁ

ଏହି ଶିକ୍ଷା କେବଳ ତୁଣ୍ଡରେ ହେବ । ଶିକ୍ଷକ ଗାଉଥିବେ, ବାଳକ-ମାନଙ୍କୁ ଗୁଆଉଥିବେ ଓ ଆବଶ୍ୟକମତେ ତାଳି ମାରିବେ ଓ ନାଚ କରିବେ ।

୧ମ ଓଷ୍ଠ୍ୟ —

ତପ, ଗପ, ସପ—"ପ"ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ, ଶବ୍ଦର ଶେଷ ଅକ୍ଷର "ପ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ତପ ପ ପ୍ ପ ପ ପ ପ୍
ପପ ପ ପ୍ ପ ପ ପ ପ୍
ଗପ ପ ପ୍ ପ ପ ପ ପ୍
ପପ ପ ପ୍ ପ ପ ପ ପ୍
ସପ ପ ପ୍ ପ ପ ପ ପ୍
ପପ ପ ପ୍ ପ ପ ପ ପ୍

---

ଝଫ, ଗଫ—"ଫ"ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ, ଶବ୍ଦର ଶେଷରେ ଥିବା ଅକ୍ଷର "ଫ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଝଫ ଫ ଫ୍ ଫ ଫ ଫ ଫ୍

ଫଫ ଫ ଫ୍ ଫ ଫ ଫ ଫ୍

ଗଫ ଫ ଫ୍ ଫ ଫ ଫ ଫ୍

ଫଫ ଫ ଫ୍ ଫ ଫ ଫ ଫ୍

---

ଗବ, ଲବ, କବ—"ବ"ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ । ଶବ୍ଦ ଶେଷରେ ଥିବା "ବ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଗବ ବ ବ୍ ବ ବ ବ ବ୍

ବବ ବ ବ୍ ବ ବ ବ ବ୍

ଲବ ବ ବ୍ ବ ବ ବ ବ୍

ବବ ବ ବ୍ ବ ବ ବ ବ୍

ଝବ ବ ବ୍ ବ ବ ବ ବ୍

ବବ ବ ବ୍ ବ ବ ବ ବ୍

---

ନଭ ଭ ଭ୍ ଭ ଭ ଭ ଭ୍

ଭଭ ଭ ଭ୍ ଭ ଭ ଭ ଭ୍

---

**ଆମ**, ଡମ, ଚମ, ଯମ—"ମ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ମ" ଶିଶୁଙ୍କୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ଆମ | ମ | ମ୍ | ମ | ମ | ମ | ମ୍ |
| ମମ | ମ | ମ୍ | ମ | ମ | ମ | ମ୍ |
| ଡମ | ମ | ମ୍ | ମ | ମ | ମ | ମ୍ |
| ମମ | ମ | ମ୍ | ମ | ମ | ମ | ମ୍ |
| ଚମ | ମ | ମ୍ | ମ | ମ | ମ | ମ୍ |
| ମମ | ମ | ମ୍ | ମ | ମ | ମ | ମ୍ |
| ଯମ | ମ | ମ୍ | ମ | ମ | ମ | ମ୍ |
| ମମ | ମ | ମ୍ | ମ | ମ | ମ | ମ୍ |

---

**କଉ**, ନଉ, ଛଉ, ବଉ—"ଉ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦର ଶେଷରେ ଥିବା "ଉ" ଶିଶୁଙ୍କୁ କେତେ ଥର ବୋଲାଇବାକୁ ହେବ । ଯଥା—

| | | | | |
|---|---|---|---|---|
| କଉ | ଉ | ଉ | ଉ | ଉ |
| ଉଉ | ଉ | ଉ | ଉ | ଉ |
| ନଉ | ଉ | ଉ | ଉ | ଉ |
| ଉଉ | ଉ | ଉ | ଉ | ଉ |
| ଛଉ | ଉ | ଉ | ଉ | ଉ |

ଡଉ     ଉ   ଉ   ଉ   ଉ

ବଉ     ଉ   ଉ · ଉ   ଉ

ଉଉ     ଉ   ଉ   ଉ   ଉ

---

୨ । ଦନ୍ତ୍ୟ—

ଗୀତ, ସତ, ନତ—"ତ"ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ । ଶବ୍ଦ ଶେଷରେ ଥିବା "ତ" ଶିଶୁକୁ କେତେ ଥର ବୋଲାଇବାକୁ ହେବ । ଯଥା—

ଗୀତ     ତ   ତ୍   ତ   ତ   ତ   ତ୍

ତତ     ତ   ତ୍   ତ   ତ   ତ   ତ୍

ସତ     ତ   ତ୍   ତ   ତ   ତ   ତ୍

ତତ     ତ   ତ୍   ତ   ତ   ତ   ତ୍

ନତ     ତ   ତ୍   ତ   ତ   ତ   ତ୍

ତତ     ତ   ତ୍   ତ   ତ   ତ   ତ୍

---

ବଥ, ରଥ, ପଥ—"ଥ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଓ ଶବ୍ଦ ଶେଷରେ ଥିବା "ଥ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ବଥ     ଥ   ଥ୍   ଥ   ଥ   ଥ   ଥ୍

ଥଥ     ଥ   ଥ୍   ଥ   ଥ   ଥ   ଥ୍

ରଥ     ଥ   ଥ୍   ଥ   ଥ   ଥ   ଥ୍

ଥଥ    ଥ  ଥ୍  ଥ  ଥ  ଥ  ଥ୍

ପଥ    ଥ  ଥ୍  ଥ  ଥ  ଥ  ଥ୍

ଥଥ    ଥ  ଥ୍  ଥ  ଥ  ଥ  ଥ୍

---

ନଦ, ଲଦ—"ଦ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଦ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ନଦ    ଦ  ଦ୍  ଦ  ଦ  ଦ  ଦ୍

ଦଦ    ଦ  ଦ୍  ଦ  ଦ  ଦ  ଦ୍

ଲଦ    ଦ  ଦ୍  ଦ  ଦ  ଦ  ଦ୍

ଦଦ    ଦ  ଦ୍  ଦ  ଦ  ଦ  ଦ୍

---

ଗଧ, ବଧ—"ଧ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଧ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଗଧ    ଧ  ଧ୍  ଧ  ଧ  ଧ  ଧ୍

ଧଧ    ଧ  ଧ୍  ଧ  ଧ  ଧ  ଧ୍

ବଧ    ଧ  ଧ୍  ଧ  ଧ  ଧ  ଧ୍

ଧଧ    ଧ  ଧ  ଧ  ଧ  ଧ  ଧ୍

---

ବନ, ଧନ—"ନ"ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ନ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ବନ | ନ | ନ୍ | ନ | ନ | ନ | ନ୍ |
| ନନ | ନ | ନ୍ | ନ | ନ | ନ | ନ୍ |
| ଧନ | ନ | ନ୍ | ନ | ନ | ନ | ନ୍ |
| ନନ | ନ | ନ୍ | ନ | ନ | ନ | ନ୍ |

---

ବଳ, ଖଳ, ଢଳ, ହଳ—"ଳ"ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଳ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ବଳ | ଳ | ଳ୍ | ଳ | ଳ | ଳ | ଳ୍ |
| ଳଳ | ଳ | ଳ୍ | ଳ | ଳ | ଳ | ଳ୍ |
| ଖଳ | ଳ | ଳ୍ | ଳ | ଳ | ଳ | ଳ୍ |
| ଳଳ | ଳ | ଳ୍ | ଳ | ଳ | ଳ | ଳ୍ |
| ଢଳ | ଳ | ଳ୍ | ଳ | ଳ | ଳ | ଳ୍ |
| ଳଳ | ଳ | ଳ୍ | ଳ | ଳ | ଳ | ଳ୍ |
| ହଳ | ଳ | ଳ୍ | ଳ | ଳ | ଳ | ଳ୍ |
| ଳଳ | ଳ | ଳ୍ | ଳ | ଳ | ଳ | ଳ୍ |

---

ବଲ, ଟଲ—"ଲ୍" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଲ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ବଲ | ଲ | ଲ୍ | ଲ | ଲ | ଲ | ଲ୍ |
| ଲଲ | ଲ | ଲ୍ | ଲ | ଲ | ଲ | ଲ୍ |
| ଟଲ | ଲ | ଲ୍ | ଲ | ଲ | ଲ | ଲ୍ |
| ଲଲ | ଲ | ଲ୍ | ଲ | ଲ | ଲ | ଲ୍ |

---

ହସ, ବସ, କସ—"ସ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ସ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ହସ | ସ | ସ୍ | ସ | ସ | ସ | ସ୍ |
| ସସ | ସ | ସ୍ | ସ | ସ | ସ | ସ୍ |
| ବସ | ସ | ସ୍ | ସ | ସ | ସ | ସ୍ |
| ସସ | ସ | ସ୍ | ସ | ସ | ସ | ସ୍ |
| କସ | ସ | ସ୍ | ସ | ସ | ସ | ସ୍ |
| ସସ | ସ | ସ୍ | ସ | ସ | ସ | ସ୍ |

---

"ଝ" ଯୁକ୍ତ ସହଜ ଶବ୍ଦ ଓଡ଼ିଆ ଭାଷାରେ ନ ଥିବାରୁ ଦିଆଯାଇ ପାରୁ ନାହିଁ, ଏଣୁ ସେହି ଅକ୍ଷରକୁ ଅନେକ ଥର ବୋଲାଇଲେ ହେଲା । ଯଥା—

ଙ   ଙ   ଙ   ଙ,   ଙ   ଙ   ଙ · ଙ
ଙ   ଙ   ଙ   ଙ,   ଙ   ଙ   ଙ   ଙ

---

୩ । ତାଳବ୍ୟ—

ବଚ, ଖଚ—"ଚ"ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଚ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ବଚ   ଚ   ଚ୍   ଚ   ଚ   ଚ   ଚ୍
ଚଚ   ଚ   ଚ୍   ଚ   ଚ   ଚ   ଚ୍
ଖଚ   ଚ   ଚ୍   ଚ   ଚ   ଚ   ଚ୍
ଚଚ   ଚ   ଚ୍   ଚ   ଚ   ଚ,  ଚ୍.

---

ଗଛ, ପଛ—"ଛ"ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଛ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଗଛ   ଛ   ଛ୍   ଛ   ଛ   ଛ   ଛ୍
ଛଛ   ଛ   ଛ୍   ଛ   ଛ   ଛ   ଛ୍
ପଛ   ଛ   ଛ୍   ଛ   ଛ   ଛ   ଛ୍
ଛଛ   ଛ   ଛ୍   ଛ   ଛ   ଛ   ଛ୍ .

---

ଅଜ, ସଜ—"ଜ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଜ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଅଜ ଜ ଜ୍ ଜ ଜ ଜ ଜ୍

ଜଜ ଜ ଜ୍ ଜ ଜ ଜ ଜ୍

ଯଜ ଜ ଜ୍ ଜ ଜ ଜ ଜ୍

ଜଜ ଜ ଜ୍ ଜ ଜ ଜ ଜ୍

---

ଓଟ—"ଟ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଟ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଓଟ ଟ ଟ୍ ଟ ଟ ଟ ଟ୍

ଟଟ ଟ ଟ୍ ଟ ଟ ଟ ଟ୍

---

ବ-ଞ-ର ବଞ୍ଚ, ଗ-ଞ-ର ଗଞ୍ଚ "ଞ୍ଚ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଞ" "ର" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଞର ଞ ର ଞ ର ଞ ର୍

ଞ ଞ ଞ ଞ ଞ ଞ ରର୍

"ଞ" ଅକ୍ଷରରେ ଓଡ଼ିଆ ଶବ୍ଦ ନ ଥିବାରୁ ଏହା ସାଙ୍ଗ ଦିଆ ହେଲା ।

---

ଆଇ, ଖାଇ —"ଇ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଇ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଆଇ ଇ ଇ ଇ ଇ
ଇଇ ଇ ଇ ଇ ଇ
ଖାଇ ଇ ଇ ଇ ଇ
ଇଇ ଇ ଇ ଇ ଇ

---

ଆୟୁ, ବାୟୁ—"ୟୁ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ୟୁ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଆୟୁ ୟୁ ୟୁ, ୟୁ ୟୁ, ୟୁ ୟୁ ୟୁ, ୟୁ
ବାୟୁ ୟୁ ୟୁ, ୟୁ ୟୁ, ୟୁ ୟୁ ୟୁ, ୟୁ

ଯମ—"ଯ" ଆଦ୍ୟରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଆଦ୍ୟରେ ଥିବା "ଯ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଯମ୍ ଯମ୍ ଯମ୍
ଯମ୍ ଯମ୍ ଯମ୍

---

ବଶ, ଦଶ—"ଶ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଶ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ବଶ | ଶ | ଶ୍ | ଶ | ଶ | ଶ | ଶ୍ |
| ଖଶ | ଶ | ଶ୍ | ଶ | ଶ | ଶ | ଶ୍ |
| ଦଶ | ଶ | ଶ୍ | ଶ | ଶ | ଶ | ଶ୍ |
| ଶଶ | ଶ | ଶ୍ | ଶ | ଶ | ଶ | ଶ୍ |

---

୪ । କଣ୍ଠ୍ୟ—

ଚକ, ବକ, ଛକ, ଛକ—"କ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "କ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ଚକ | କ | କ୍ | କ | କ | କ | କ୍ |
| କକ | କ | କ୍ | କ | କ | କ | କ୍ |
| ବକ | କ | କ୍ | କ | କ | କ | କ୍ |
| କକ | କ | କ୍ | କ | କ | କ | କ୍ |
| ଛକ | କ | କ୍ | କ | କ | କ | କ୍ |
| କକ | କ | କ୍ | କ | କ | କ | କ୍ |

---

ନଖ, ଅଖ—"ଖ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଖ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ନଖ    ଖ  ଖ୍  ଖ  ଖ  ଖ  ଖ୍
ଖଖ    ଖ  ଖ୍  ଖ  ଖ  ଖ  ଖ୍
ଅଖ    ଖ  ଖ୍  ଖ  ଖ  ଖ  ଖ୍
ଖଖ    ଖ  ଖ୍  ଖ  ଖ  ଖ  ଖ୍

---

ବଗ, ଅଗ, ନଗ, ଢଗ, ଠଗ—"ଗ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଗ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ବଗ    ଗ  ଗ୍  ଗ  ଗ  ଗ  ଗ୍
ଗଗ    ଗ  ଗ୍  ଗ  ଗ  ଗ  ଗ୍
ଅଗ    ଗ  ଗ୍  ଗ  ଗ  ଗ  ଗ୍
ଗଗ    ଗ  ଗ୍  ଗ  ଗ  ଗ  ଗ୍
ନଗ    ଗ  ଗ୍  ଗ  ଗ  ଗ  ଗ୍
ଗଗ    ଗ  ଗ୍  ଗ  ଗ  ଗ  ଗ୍
ଢଗ    ଗ  ଗ୍  ଗ  ଗ  ଗ  ଗ୍
ଗଗ    ଗ  ଗ୍  ଗ  ଗ  ଗ  ଗ୍

| | | | | | | |
|---|---|---|---|---|---|---|
| ଠଗ | ଗ | ଗ୍ | ଗ | ଗ | ଗ | ଗ୍ |
| ଗଗ | ଗ | ଗ୍ | ଗ | ଗ | ଗ | ଗ୍ |

---

ଅଘ—"ଘ"ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଘ୍" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ଅଘ | ଘ | ଘ୍ | ଘ | ଘ | ଘ | ଘ୍ |
| ଘଘ | ଘ | ଘ୍ | ଘ | ଘ | ଘ | ଘ୍ |

---

ଅ-ଙ-ଗ ଅଂଗ, ବ-ଙ-ଗ ବଂଗ—"ଙ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଙ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | |
|---|---|---|---|
| ଙର | ଙର | ଙର | ରର୍ |
| ଙଙ | ଙଙ | ଙଙ | ରର୍ |
| ଙର | ଙର | ଙର | ରର୍ |
| ଙଙ | ଙଙ | ଙଙ | ରର୍ |

"ଙ" ଅକ୍ଷରରେ ଓଡ଼ିଆ ଶବ୍ଦ ନ ଥିବାରୁ ଏହି ସବୁ ଦିଆ ହେଲା ।

---

ରହ, କହ—"ହ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ହ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ରହ ହ ହ୍ ହ ହ ହ ହ୍
ହହ ହ ହ୍ ହ ହ ହ ହ୍
କହ ହ ହ୍ ହ ହ ହ ହ୍
ହହ ହ ହ୍ ହ ହ ହ ହ୍

---

ଆ ଅ (ସ) ବ ଅ (ଘ) କ ଅ (ହ)—"ଅ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଅ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଆଅ ଅ ଅ ଅ, ଅ ଅ ଅ, ଅ ଅ ଅ,
ବଅ ଅ ଅ ଅ ଅ, ଅ ଅ ଅ, ଅ ଅ ଅ,
କଅ ଅ ଅ ଅ ଅ, ଅ ଅ ଅ, ଅ ଅ ଅ,

ଏଠାରେ ଦୁଇ ଗୋଟି ଉଦ୍ଦେଶ୍ୟ ସାଧିତ ହୋଇଅଛି । ଏକେ "ଅ" ଉଚ୍ଚାରିତ ହେଲା, ପୁଣି ସ ହ ଆଦ ଅକ୍ଷର ପ୍ରଥମରେ ଉଚ୍ଚାରଣ କରି ନ ପାରି "ଅ" ଉଚ୍ଚାରଣ କରି "ସ" "ହ" କୁ ଅଣାଗଲା ।

---

ଉଆ, ରୁଆ, ଆ, ଆ—"ଆ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଆ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | |
|---|---|---|---|---|
| ଉଆ | ଆ | ଆ | ଆ | ଆ |
| ଆଆ | ଆ | ଆ | ଆ | ଆ |
| ଊଆ | ଆ | ଆ | ଆ | ଆ |
| ଆଆ | ଆ | ଆ | ଆ | ଆ |

---

୫ । ମୂର୍ଦ୍ଧନ୍ୟ—

ଖଟ, ହଟ, ଜଟ, ଘଟ—"ଟ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଟ୍" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ଖଟ | ଟ | ଟ୍ | ଟ | ଟ | ଟ | ଟ୍ |
| ଟଟ | ଟ | ଟ୍ | ଟ | ଟ | ଟ | ଟ୍ |
| ହଟ | ଟ | ଟ୍ | ଟ | ଟ | ଟ | ଟ୍ |
| ଟଟ | ଟ | ଟ୍ | ଟ | ଟ | ଟ | ଟ୍ |
| ଜଟ | ଟ | ଟ୍ | ଟ | ଟ | ଟ | ଟ୍ |
| ଟଟ | ଟ | ଟ୍ | ଟ | ଟ | ଟ | ଟ୍ |
| ଘଟ | ଟ | ଟ୍ | ଟ | ଟ | ଟ | ଟ୍ |
| ଟଟ | ଟ | ଟ୍ | ଟ | ଟ | ଟ | ଟ୍ |

---

ମଠ, ଆଠ, ଓଠ—"ଠ" ଶେଷରେ କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଠ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ମଠ    ଠ ଠ୍ ଠ ଠ ଠ ଠ୍
ଠଠ    ଠ ଠ୍ ଠ ଠ ଠ ଠ୍
ଆଠ    ଠ ଠ୍ ଠ ଠ ଠ ଠ୍
ଠଠ    ଠ ଠ୍ ଠ ଠ ଠ ଠ୍
ଓଠ    ଠ ଠ୍ ଠ ଠ ଠ ଠ୍
ଠଠ    ଠ ଠ୍ ଠ ଠ ଠ ଠ୍

---

ବଡ, ଗଡ—"ଡ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଡ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ବଡ    ଡ ଡ୍ ଡ ଡ ଡ ଡ୍
ଡଡ    ଡ ଡ୍ ଡ ଡ ଡ ଡ୍
ଗଡ    ଡ ଡ୍ ଡ ଡ ଡ ଡ
ଡଡ    ଡ ଡ୍ ଡ ଡ ଡ ଡ୍

---

ପଢ, ଚଢ—"ଢ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଢ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ପଢ | ଢ | ଢ୍ | ଢ | ଢ | ଢ | ଢ୍ |
| ଢଢ | ଢ | ଢ୍ | ଢ | ଢ | ଢ | ଢ୍ |
| ଚଢ | ଢ | ଢ୍ | ଢ | ଢ | ଢ | ଢ୍ |
| ଢଢ | ଢ | ଢ଼ | ଢ | ଢ | ଢ | ଢ୍ |

---

ବଣ, ପଣ, ଗଣ, କଣ—“ଣ” ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା “ଣ” ଶିଶୁଙ୍କୁ ଅନେକ ଥର ବୋଲାଇବାକୁ ହେବ । ଯଥା—

| | | | | | | |
|---|---|---|---|---|---|---|
| ବଣ | ଣ | ଣ୍ | ଣ | ଣ | ଣ | ଣ୍ |
| ଣଣ | ଣ | ଣ୍ | ଣ | ଣ | ଣ | ଣ୍ |
| ପଣ | ଣ | ଣ୍ | ଣ | ଣ | ଣ | ଣ୍ |
| ଣଣ | ଣ | ଣ୍ | ଣ | ଣ | ଣ | ଣ୍ |
| ଗଣ | ଣ | ଣ୍ | ଣ | ଣ | ଣ | ଣ୍ |
| ଣଣ | ଣ | ଣ୍ | ଣ | ଣ | ଣ | ଣ୍ |
| କଣ | ଣ | ଣ୍ | ଣ | ଣ | ଣ | ଣ୍ |
| ଣଣ | ଣ | ଣ୍ | ଣ | ଣ | ଣ | ଣ୍ |

---

ଗର୍—“ର୍” ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା “ର୍” ଶିଶୁଙ୍କୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଗଡ଼         ଡ଼   ଡ଼   ଡ଼   ଡ଼   ଡ଼   ଡ଼୍

ଡ଼ଡ଼         ଡ଼   ଡ଼   ଡ଼   ଡ଼   ଡ଼   ଡ଼୍

---

ବର୍, ଘର୍, ଜର୍—"ର" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ର" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା —

ବର         ର   ର୍   ର   ର   ର   ର୍

ରର         ର   ର୍   ର   ର   ର   ର୍

ଘର         ର   ର୍   ର   ର   ର   ର୍

ରର         ର   ର୍   ର   ର   ର   ର୍

ଜର         ର   ର୍   ର   ର   ର   ର୍

ରର         ର   ର୍   ର   ର   ର   ର୍

---

ଚପ୍, ଝପ୍, ହପ୍—"ପ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ପ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଚପ         ପ   ପ୍   ପ   ପ   ପ   ପ୍

ପପ         ପ   ପ୍   ପ   ପ   ପ   ପ୍

ଝପ         ପ   ପ୍   ପ   ପ   ପ   ପ୍

ପପ         ପ   ପ୍   ପ   ପ   ପ   ପ୍

ଘୃଷ ଷ ଷ୍ ଷ ଷ ଷ ଷ୍

ଷଷ ଷ ଷ୍ ଷ ଷ ଷ ଷ୍

---

୬ । ଦନ୍ତ୍ୟୋଷ୍ଠ୍ୟ—

ନବ—"ବ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ବ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ନବ ବ ବ୍ ବ ବ ବ ବ୍

ଭବ ବ ବ୍ ବ ବ ବ ବ୍

---

୭ । କଣ୍ଠୋଷ୍ଠ୍ୟ—

ଏକ, ଏଲ—"ଏ" ଆଦ୍ୟରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଆଦ୍ୟରେ ଥିବା "ଏ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଏକ ଏଏ ଏ ଏ ଏ

ଏଏ ଏ ଏ ଏ

ଏଲ ଏଏ ଏ ଏ ଏ

ଏଏ ଏ ଏ ଏ

---

ଐକ୍ୟ—"ଐ" ଅଦ୍ୟରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଅଦ୍ୟରେ ଥିବା "ଐ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଔକ୍ୟ        ଔ  ଔ  ଔ  ଔ  ଔ  ଔ
            ଔ  ଔ  ଔ  ଔ  ଔ  ଔ

---

୮ । କଣ୍ଠତାଲବ୍ୟ—

ଓଟ, ଓଠ, ଓଜ, ଓଧ—"ଓ" ଆଦ୍ୟରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଆଦ୍ୟରେ ଥିବା "ଓ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଓଟ     ଓ  ଓ  ଓ  ଓ  ଓ
       ଓ  ଓ  ଓ  ଓ  ଓ

ଓଠ     ଓ  ଓ  ଓ  ଓ  ଓ
       ଓ  ଓ  ଓ  ଓ  ଓ

ଓଜ     ଓ  ଓ  ଓ  ଓ  ଓ
       ଓ  ଓ  ଓ  ଓ  ଓ

ଓଧ     ଓ  ଓ  ଓ  ଓ  ଓ
       ଓ  ଓ  ଓ  ଓ  ଓ

---

୯ । କଣ୍ଠମୂର୍ଦ୍ଧନ୍ୟ—

ଅଷ, ଯଷ—"ଷ" ଶେଷରେ ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶବ୍ଦ ଶେଷରେ ଥିବା "ଷ" ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ଅଷ     ଷ  ଷ  ଷ  ଷ  ଷ  ଷ

ଯଷ     ଷ  ଷ  ଷ  ଷ  ଷ  ଷ

ଯଯ ଯ ଯ ଯ ଯ ଯ ଯ

ଯଯ ଯ ଯ ଯ ଯ ଯ ଯ

---

୧୦—ରଂଗ, ସଂଗ, ଡଂଗ—"ം" ଅନୁସ୍ୱାର ଥିବା କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶିଶୁକୁ ଅନେକ ଥର ବୋଲାଇବାକୁ ହେବ । ଯଥା—

ରଂଗ ଗଂ ଗଂ ଗଂ ଗଂ

ସଂଗ ଗଂ ଗଂ ଗଂ ଗଂ

ଡଂଗ ଗଂ ଗଂ ଗଂ ଗଂ

ବଂ ବଂ ବଂ ବଂଶ

ହଂ ହଂ ହଂ ହଂସ

କଂ କଂ କଂ କଂସ

---

ଉଚଃ, ସରଃ—"ଃ" (ବିସର୍ଗ) ଯୁକ୍ତ କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶିଶୁକୁ ଅନେକ ଥର ବୋଲାଇବାକୁ ହେବ ।

ଓଁ, ହଁ—"ଁ" (ଚନ୍ଦ୍ରବିନ୍ଦୁ) ଯୁକ୍ତ କେତେକ ଶବ୍ଦ ବାଛିବାକୁ ହେବ ଏବଂ ଶିଶୁକୁ ଅନେକ ଥର ବୋଲାଇବାକୁ ହେବ ।



# ଦ୍ୱିତୀୟ ସୋପାନ ।

## ଅକ୍ଷର ପରିଚୟ ।

ଶିକ୍ଷକ "ଅ ନାମ ନାମରେ ଅ" ଏହାକୁ କଳାପଟାରେ ଲେଖିଦେବେ । କାଗଜ ଗୁଡ଼ାଇ ଗୋଟିଏ କାଗଜ କାଠି ତିଆରି କରି ତର୍ଜନୀ ଅଙ୍ଗୁଳିରେ ଲଗାଇ "ଅ" କୁ ଦେଖାଇ ଗୀତ ପୂର୍ଣ୍ଣ ଗାଇବାକୁ ହେବ । ଏହିପରି "ଅ" ର ଗୀତକୁ ଅନେକ ଥର ଶିଶୁମାନେ ଶିକ୍ଷକଙ୍କର ଅନୁକରଣ କରିବେ । ତେତେବେଳେ ଶିଶୁମାନେ କଳାପଟାକୁ ଦେଖୁଥିବେ । ପରେ ନିଜ ନିଜ ପୁସ୍ତକ ଦେଖି "ଅ" ଅକ୍ଷରରେ ଅଙ୍ଗୁଳି ମାରି ସେହି ଗୀତ ଗାଇବେ, ଏହିପରି ପ୍ରତ୍ୟେକ ଅକ୍ଷର ଗୀତ ଗାଇବା ସଙ୍ଗେ ଅକ୍ଷର ଶିକ୍ଷା ହେବ । ଆବଶ୍ୟକମତେ ତାଳି ମାରିବେ ଓ ନାଚ କରିବେ ।

## ସ୍ୱର ବର୍ଣ୍ଣ ।

ଅ ନାମ ନାମରେ ଅ । ବାନ୍ଧି କଲବେଳେ ବୋଲଇଁ ଅ ।୧।
ଦେଖ ଅ ରେ ବାଡ଼ ଆ । ଡାକିଲାବେଳେ ମୁଁ ବୋଲଇ ଆ ।୨।
ଇଟାରେ ଦେଖ ଇ । କାହିଁକି ଡାକିଲୁ ସଇତା ଭଇ ॥
ଦେଖ ଇ ର ଭାଇ ଈ । ପିଠି ପଶିଗଲା ମାଡ଼ ଖାଇ । ୩ ।
କାଉ ରେ ଦେଖ ଉ । ଲାଲ ଶାଢ଼ୀ ପିନ୍ଧେ ସାଧବ ବୋଉ ।୪।
ଊ ର ଉ ଭଉଣୀ କୁଢ଼ୀ । ଆଉ ଥରେ ଦେଲା ଲାଞ୍ଜ ମୋଡ଼ି ।୫।
ଋ କୁ ଋଣରେ ପଢ଼ । ଋଣକୁ ହରୁ ମୁଁ କରେଁ ଜୁହାର ।୬।
ୠ ର ସିନା ୠ ସୋଦର । ଆମ୍ଭ ପାଠେ ନାହିଁ ଏହା ବେଭାର ।୭।
ଌ ୡ ବୋଲି ଦି ଭଉଣୀ । ଭାତ ଖାଉଥିଲେ ମାଡ଼ କହୁଣୀ । ୮ ।
ଆମ୍ଭ ଘରୁ ଦହେଁ ହେଲେ ବାହାର । ଆମ୍ଭ ପାଠେ ନାହିଁ ତାଙ୍କ ବେଭାର ।୯।

ଏ କୁ ଦେଖ ଏ କରେ ଭାଇ । ନିତ୍ୟ ବୁଲୁଥାଏ ଯାଇ କ ଯାଇ ।୯।
ଐ ସିନା ଅଟେ ଏ ରୁ ସାନ । ତାହାର ପୁଣି ବଡ଼ ଗୁମାନ ।୧୦।
ଓ କୁ ଓଠରେ ଦେଖ । ନୁହଇ ସେଠା କେବେ ସଲଖ ।୧୧।
ଔ ବୋଲ ଯାକୁ କହୁ । ଔଷଧ ଅଗରେ ଦେଖିବ ଭାଇ ।୧୨।
ଂ (ଅନୁସ୍ୱାର) ଦେଖି ସିନ୍ଦୂର ଟୋପା । କପାଳେ ମାରନ୍ତି ହଂସୀ ଅପା ।୧୩।
ଁ (ଚନ୍ଦ୍ରବିନ୍ଦୁ) ଃ (ବିସର୍ଗ) ଏହାର ସଙ୍ଗ । ପର ଦେହରେ କରନ୍ତି ରଙ୍ଗ ।୧୪।

---

## ବ୍ୟଞ୍ଜନ ବର୍ଣ୍ଣ ।

କ କଲମେ, ଖ କୁ ଖମ୍ବେ, ଗ କୁ ଗରୁଡ଼େ ଦେଖ ।
ଘ ଘରେ ଥାଇ ନାଚ କରୁଅଛି, ଙ ଦେଖାଉଛି ଭେଖ ।
ଚ କୁ ଚକେ, ଛ ଛତାରେ, ଜ କୁ ଦେଖ ଜଗତେ ।
ଝ ଝକା ଅଗରେ ଝ ଝକ ଝକ, ଞ ନାହିଁ କାହା ସାଥେ ।
ଟ ଟଙ୍କାରେ, ଠ କୁ ଠକେ, ଡ ଡଙ୍କାରେ ଢ ଢଗେ ।
ଣ ଣମେ କେତେଛି ଦେଖାଏ ଣମ, ଣ ଦେଖ କଣ ସେସେ ।
ତ ତଳରେ, ଥ ରକେ ଥ, ଦ ଧର ଅଗେ ଦ ।
ଧ ଧରମେ ଜଗି ବସିଅଛି, ନ ନିର ଶେଷେ ନ ।
ପ ପବନେ, ଫ ଫଣାରେ, ଦେଖ ହେ ବ କୁ ବଶେ ।
ଭ ଗିନାର ଅଗେ ଭ କୁ ରଖ, ମ କୁ କଲମ ଶେଷେ ।
ଯ, ୟ, ବୋଲି ଦୁ ଜଣ ଭାଇ, ଗୋଟିଏ ମା'ରୁ ଜାତ,
ଯ କୁ ଯମେ, ୟ କୁ ନୟନେ, ତାଙ୍କର ଗୋଟିଏ ତାତ ।

ର କୁ ରଥେ, ଲ ଲଢାଇ, ଳିଭ ଖାଇ ଳ,
ଳ ବଳରେ, ବ କୁଳେ ବ, କରୁଥାନ୍ତି କେତେ ଖେଳ ।
ଛନ ଗୋଟି ଭାଇ କେଡ଼େ ସୁନ୍ଦର, ଶ, ଷ, ସ, ନାମ ତାଙ୍କର;
ଶଗଡ଼, ଷଣ୍ଢ, ସତେ ।
କାହାର ରୂପ କା ସଙ୍ଗେ ନ ମିଶେ, ଦେଖିଲେ ଯିବ ପରତେ ।
ହ ବୋଲି ଯେଉଁ ଅକ୍ଷର ଗୋଟାକ ତୁମ୍ଭର ହ ସ୍ୱରେ ଦେଖ,
କ୍ଷ ହେଲେ ହେଲା ଦୋମିଶା ଅଟିର ଏହାର ସଙ୍ଗରେ ରଖ ।



## ତୃତୀୟ ସୋପାନ ।

### ବାରମ୍ବାର ଦୃଷ୍ଟିରେ ସ୍ୱରଶିକ୍ଷା ।

ଅକ୍ଷର ଉପରେ ଶିକ୍ଷକ ହାତ ବୁଲାଇ ଗୀତ ଗାଇବେ ଓ ସେହିପରି ଶିଶୁମାନଙ୍କୁ ଗୁଆଇବେ । ଆବଶ୍ୟକମତେ ତାଳି ମାରିବେ ଓ ନାଚ କରିବେ । ଏହା ପୂର୍ବ ଗୃହଶାଳୀର ରୀତି ଅଟେ ।

| | |
|---|---|
| ଅ ଅ ଅରୁଣ ଖମ୍ବ | । ଆ ଆ ଆମ୍ବର ଆମ୍ବ । |
| ଇ ଇ ଇତର ଜନ | । ଈ ଈ ଈଶ୍ୱର ନାମ । |
| ଉ ଉ ଉଷା ପବନ | । ଊ ଊ ଊଷର ବନ । |
| ଋ ଋ ଋଷ ଗର୍ଜନ | । ୠ ୠ ଶିବର ନାମ । |
| ଌ ଌ ଝିଡକୁ କହ | । ୡ ୡ ଦେଖା ବୋଲଇ । |

ଏ ଏ ଏରଣ୍ଡ ଗଛ । ଐ ଐ ଐଶୀ ବଶ ।
ଓ ଓ ଓଁକାର ସାର । ଔ ଔ ଔଷଧ ଧର ।
କ କ କମଳା ପଣ୍ଡ । ଖ ଖ ଖଗରେ ସ୍ଥିତ ।
ଗ ଗ ଗରୁଡ଼ ନାମ । ଘ ଘ ଘଟଣ ଶ୍ୟାମ ।
ଙ ଙ ଙ କାରୁଅଛୁ । ଚ ଚ ଚକ୍ରଭ ବାହୁ ।
ଛ ଛ ଛଇଳ କଣ୍ଢା । ଜ ଜ ଜଗତ ନନା ।
ଝ ଝ ଝଃକୁଅଛୁ । ଞ ଞ ନାହିଁକ କଛୁ ।
ଟ ଟ ଟଲ ପଡବ । ଠ ଠ ଠକାଇ ନେବ ।
ଡ ଡ ଡମ୍ବରୁ ଧର । ଢ ଢ ଢମ ନ କର ।
ଣ ଣ ଗୋଟିଏ ରଣ । ତ ତ ତଳକୁ ଦେଖ ।
ଥ ଥ ଥରୁଛି ଦେହ । ଦ ଦ ଦମ୍ଭକୁ ବୃଦ୍ଧ ।
ଧ ଧ ଧରଣୀଧର । ନ ନ ନରକେ ଡର ।
ପ ପ ପବନ ଦେବ । ଫ ଫ ଫଁଳ ଝାଡ଼ବ
ବ ବ ବକ ବୈଷ୍ଣବ । ଭ ଭ ଭଣ୍ଡ ନୋହବ
ମ ମ ମଧୁସୂଦନ । ଯ ଯ ଯମୁନା ବନ ।
ର ର ରମା ସୁନ୍ଦରୀ । ଲ ଲ ଲଛାର ପଢ ।
ବ ବ ବଟ ପିପ୍ପଳ । ଶ ଶ ଶଙ୍କା ନ କର ।
ଷ ଷ ଷଣ୍ଢ ବଳଦ । ସ ସ ସର୍ବ ସମ୍ପଦ ।
ହ ହ ହରଣ ମଲ । କ୍ଷ କ୍ଷ କ୍ଷମ୍ଭ ହୋଇଲ ।



# ଚତୁର୍ଥ ସୋପାନ ।

## ଅକ୍ଷର କ୍ରୀଡ଼ା ।

ଅ ପାଞ୍ଚଟି ଇ ପାଞ୍ଚଟି ଏପରି ପ୍ରତ୍ୟେକ ଅକ୍ଷର ପାଞ୍ଚଟି ଲେଖାଏଁ କାଗଜ ପଟାରେ ପ୍ରସ୍ତୁତ କରି ରଖିବାକୁ ହେବ । ଏହି ସମସ୍ତ ଶବ୍ଦମାନ ବାଳକମାନଙ୍କୁ ଚିହ୍ନାଇବାକୁ ହେବ । ଅଭ୍ୟାସ ପରେ ଉପରୋକ୍ତ ଅକ୍ଷର କାର୍ଡ଼ମାନ ଗୋଟିଏ ସ୍ଥାନରେ ରଖାହେବ । ବାଳକମାନେ ତହିଁ ଚାରି ଆଡ଼ରେ ବସିବେ ଏବଂ ଅକ୍ଷର ଆଣି ଏହି ଏହି ଶବ୍ଦମାନ ଯେପରି ପ୍ରସ୍ତୁତ କରି ପାରିବେ, ଶିକ୍ଷକ ସେପରି ସାହାଯ୍ୟ ଦେବେ ।

ଅଗ, ଅଘ, ଅଜ, ଅଟଳ, ଅତଏବ, ଅଧ, ଅଧର, ଅନଳ, ଅନବରତ, ଅନଶନ, ଅପଚୟ, ଅପଥ, ଅଭୟ, ଅମର, ଅମଳ, ଅୟନ, ଅବୟବ, ଅଶନ, ଅହ, ଅଳସ, ଅସନ, ଅହରହ ।

ଆଇନ, ଆଈ, ଆଉ, ଆକଟ, ଆଗ, ଆଗତ, ଆଗମନ, ଆଚମନ, ଆଚରଣ, ଆଜ, ଆଠ, ଆଡ଼, ଆତ, ଆତପ, ଆନନ, ଆପଣ, ଆପଦ, ଆୟ, ଆରବ, ଆଳୟ, ଆବର, ଆବରଣ, ଆଶ, ଆହବ ।

ଇତର, ଈଶ ।

ଉଆ, ଉଆସ, ଉଇ, ଉଷ, ଉଟଜ, ଉଦକ, ଉଦର, ଉପଗତ, ଉପଳ, ଉପବନ, ଉଭୟ, ଉର ।

ଊନ, ଊହ ।
ଋକ୍, ଋଷି, ଋତ ।
ଏଇ, ଏକ, ଏକକ, ଏକତମ ।
ଐଶ ।

ଓଉ, ଓଘ, ଓଜନ, ଓଜର, ଓଢ଼, ଓଦନ ।

କଅଣ, କଏଦ, କଉ, କଚ, କଛା, କଟକ, କଣ, କଥନ, କଦନ, କନକ, କମ, କମଳ, କଂର, କରକଚ, କରଜ, କରଣ, କରତ, କଲମ, କଲସ, କବଚ, କବଳ ।

ଖଇଁ, ଖଇର, ଖଗ, ଖଚ, ଖତ, ଖନନ, ଖରଚ, ଖରଡ଼, ଖଳ, ଖଲ, ଖବର ।

ଗଉଡ, ଗଗନ, ଗଜ, ଗଡ, ଗଡବଡ, ଗଢ଼ଣ, ଗଣନ, ଗତ, ଗଦ, ଗର, ଗରଗଡ, ଗରଜ, ଗରମ, ଗରଳ, ଗବ୍ୟ, ଗହଳ ।

ଘଟ, ଘଟକ, ଘଟଣ, ଘଂତ, ଘନ, ଘର ।

ଚଉକ, ଚଉଦ, ଚକ, ଚଟକ, ଚଢ଼କ, ଚଣକ, ଚପକନ୍, ଚପଟ, ଚପଳ, ଚମ, ଚମକ, ଚୟୁ, ଚୟୁନ, ଚରକ, ଚରଣ, ଚରମ, ଚରସ, ଚଳନ ।

ଜଉ, ଜଗା, ଜଗତ୍, ଜଘନ, ଜଟ, ଜଠର, ଜଡ଼, ଜଣା, ଜନ, ଜନନ, ଜନକ, ଜଳ, ଜଳକର, ଜଳଜ, ଜଳଧର ।

ଝଟକା, ଝଣଝଣ, ଝପଟ, ଝର, ଝରଝର, ଝମ୍ପ, ଝଲକ ।

ଟଗର, ଟମକ, ଟଳଟଳ, ଟହଟହ ।
ଠଉର, ଠକ, ଠଣ, ଠଣ୍‌ଠଣ୍ ।
ଡଗର, ଡଙ୍ଗନ, ଡର, ଡହର ।
ଢଗ, ଢପ, ଢମ ।

ତଗର, ତଟ, ତନୟ, ତପ, ତପନ, ତମ, ତର, ତରଣ, ତରତର, ତରଳ, ତଳ, ତଲବ ।

ଥନ, ଥନଥନ, ଥର, ଥଳ ।
ଦକ, ଦଖଲ, ଦଢ଼, ଦର, ଦଶମ, ଦହନ ।
ଧକ୍‌ଧକ୍, ଧଡ଼, ଧନଦ, ଧନ, ଧବ, ଧବଳ ।

ନର, ନକ୍‌ଲ, ନଖ, ନଟ, ନଗର, ନତ, ନଥ, ନଦ, ନମନ, ନୟନ, ନର, ନରକ, ନରମ, ନଳ, ନବ, ନବମ, ନବର ।

ପଛ, ପଟ, ପଠନ, ପଣବ, ପଣସ, ପତନ, ପଦକ, ପର, ପରଖ, ପରଚ, ପରମ, ପରଳ, ପଳ, ପଶମ ।

ଫଳ, ଫଳକ ।
ବକ, ବଦର, ବଳ ।
ଭୟ, ଭର, ଭରତ, ଭବନ ।

ମଲ୍ଲ; ମଣ୍ଡଳ; ମଣ୍ଡନ; ମକର; ମଖନ; ମଖ; ମଗଜ; ମଗଧ; ମଗର; ମଟର; ମଢ଼; ମଣ; ମନନ; ମର; ମରକତ; ମରଣ; ମଜ୍ଜ; ମଳୟ; ମଳମ; ମଶକ; ମହଣ ।

ଯଜନ; ଯମ; ଯମକ; ଯମଜ; ଯମଳ; ଯବନ ।

ରକ୍ଷମ; ରଖ; ରଚକ; ରଞ୍ଜକ; ରଜତ; ରଣ; ରତ; ରଦ; ରମଣ; ରବ ।

ଲଘ; ଲଟ; ଲଦନ; ଲପନ; ଲଳନ; ଲବଣ ।

ବକ; ବକଳ; ବଚ; ବଚକ; ବଟ; ବଡ; ବଣ; ବଥ; ବଦନ; ବଦର; ବଦଳ; ବଧ; ବନ; ବୟସ; ବରଦ; ବରଷ, ବଳ; ବଳୟ; ବସ; ବସନ; ବହନ ।

ଶକ; ଶଏ; ଶକଟ; ଶକଳ; ଶଠ; ଶତ; ଶପଥ; ଶମ; ଶରଭ; ଶର; ଶଲଭ; ଶଶକ ।

ଷଟ; ଷଟ୍‌ପଦ; ଷଡଜ; ଷଡରସ ।

ସଇସ; ସକଳ; ସଙ୍ଗ; ସତ; ସଦୟ; ସନ; ସମତଳ; ସରଳ; ସରସ ।

ହଇ; ହକ; ହଟ; ହଠ; ହତ; ହନନ; ହୟ; ହର; ହଳ; ହସ ।

# ପଞ୍ଚମ ସୋପାନ ।

## ବର୍ଣ୍ଣମାଳାର ଉପସ୍ଥିତ କ୍ରମ ।

### ସ୍ୱର ।

ଅ ଆ ଇ ଈ ଉ ଊ

ଋ ୠ ଏ ଐ ଓ ଔ

ଅଂ ଅଃ ଅଁ

### ବ୍ୟଞ୍ଜନ ।

କ ଖ ଗ ଘ ଙ

ଚ ଛ ଜ ଝ ଞ

ଟ ଠ ଡ ଢ ଣ

ଡ଼ ଢ଼

ତ ଥ ଦ ଧ ନ

ପ ଫ ବ ଭ ମ

# ଯ ର ଳ ବ
# ୟ ଲ

# ଶ ଷ ସ ହ
# କ୍ଷ

ଏହି କ୍ରମରେ ସମସ୍ତ ଅକ୍ଷର ଲେଖିବାରୁ ଶିଖନ୍ତି ଓ ବାଳକମାନେ ନିମ୍ନଲିଖିତ ଗୀତ ଗାଇବେ ଓ ଆବଶ୍ୟକମତରେ ତାଳ ମାରିବେ ଏବଂ ନାଚି ବୁଲିବେ ।

## ସ୍ୱର ।

ଅହ ବସ ଚୁପ ଅଣ୍ଡ । ଅ ଆ ଇ ଈ ।୧।
ଉ ଊ ଘର ଋ ଌ । ଧର ବ ପଢ଼ ଛି ।୨।
ଶଇଲ ଦଇଁଛ କଉ । ଏ ଐ ଓ ଔ ।୩।
(ଅନୁସ୍ୱାର) ଓ ଂ ଃ (ବିସର୍ଗ) (ଚନ୍ଦ୍ରବିନ୍ଦୁ) ଦେଖ ଆଗ ।୪।

## ବ୍ୟଞ୍ଜନ କ୍ରମ ।

ଏ ପଢ଼ିଲ ଗଛର ଅଗ । କ ଖ ଗ ଘ ।୫।
ବର ଗଛ ବଢ଼ି ଉଚ୍ଚ । ଙ ପଛ ଚ ଛ ।୬।
ଜ ଝ ଞ ଟ ଠ । କହି କହି ନ କର ସଠ ।୭।
ଧର ମନ ଡ ଢ ଣ । ପଢ଼ ନ ମଣି କ୍ଷଣ ।୮।

ଝମ୍ପ ନ କର ଓଠ ଗଧ । ପଢ଼ ପଢ଼ ତ ଥ ଦ ଧ ।୯।
ଦ ଧ ପର କହ ନ । ଆଗ ପ ଫ କର ଗମନ ।୧୦।
ଫଳ ରଖ ନବ ନବ । ପ ଫ ପର ବ ଭ ।୧୧।
ବ ଭ ପର କଣ ବଳ । ମ ଯ ର ଲ ।୧୨।
ତଳପର ଆଉ କହ । ଶ ଷ ସ ହ ।୧୩।
ଅଷର ଚମ୍ପ କର ଝମ୍ପ । ହ ପର କହ କ୍ଷ ।୧୪।

---

# ଷଷ୍ଠ ସୋପାନ ।

## ସୌପାନିକ ଶିକ୍ଷା ।

ସ୍ୱର ଶିକ୍ଷା ଶେଷ କରି ବର୍ତ୍ତମାନ ରେଖା ଶିକ୍ଷା ଅଭ୍ୟାସ କରିବାକୁ ହେବ । ସ୍ୱରଶିକ୍ଷା ସକାଶେ ଯେମନ୍ତ କ୍ରମିକତା ଅବଲମ୍ବନ କରି ହୋଇଥିଲା ସେପରି ଲେଖା ଶିକ୍ଷାର ମଧ୍ୟ କ୍ରମିକତା ରକ୍ଷା କରିବାର ନିତାନ୍ତ ଆବଶ୍ୟକ ।

ରେଖା—ସୌପାନିକ ରୀତି ତଳେ ପ୍ରଦତ୍ତ ହେଲା ।

୧ । ○, ଚ, ର, ଗ, ଝ, ଟ, ଉ, ଊ, ଘ, ଶ, ଣ, ଇ, ଈ, ଛ, ଡ, ଂ, ଃ, ଁ ।

୨ । ଦ, ବ, ହ, କ ।

୩ । ପ, ଫ, ଯ, ଯ୍ୟ, ଝ, ଷ, ଘ, ତ, ଡ଼, ଜ, ଢ଼, ଙ, ଭ, ଉ, ଊ ।

୪ । ଥ, ଅ, ଆ, ଳ, ଲ, ଧ, ମ, ସ, ଲ, ନ, ଏ, ଐ, ଓ, ଔ, ଖ ।

୫ । ୧, ୨, ୩, ୪, ୫, ୬, ୭, ୮, ୯, ୦ ।

ସରଳ ରେଖା ବକ୍ର ରେଖା ଅପେକ୍ଷା କଠିଣତର । ଓଡ଼ିଆ ଅକ୍ଷର ସକଳ ବୃତ୍ତ ବା ବୃତ୍ତାଂଶ, ତେଣୁ ଏ ରୀତି ସଙ୍କଳିତ ହୋଇଅଛି । ଏହାଦ୍ୱାରା "ନମ୍ର ଶିକ୍ଷକ ସୁହୃଦ୍" ପ୍ରଦତ୍ତ ଲେଖାର କ୍ରମିକତା ସମର୍ଥିତ ହୋଇ ପାରୁ ନାହିଁ ।

"O" କୁ ସର୍ବ ପ୍ରଥମରେ ଶିକ୍ଷା ଦେବାପାଇଁ ନିର୍ବାଚନ କରା ହୋଇ-ଅଛି । ୧ମ କାରଣ ଏହି ଅକ୍ଷର ଲେଖି ଶିଖିଲେ ଅନ୍ୟାନ୍ୟ ଅକ୍ଷର ଲେଖି ଶିଖିବାକୁ ଆଦୌ କଷ୍ଟ ହେବ ନାହିଁ ।

୨ୟତଃ ଏହା ସମସ୍ତ ଓଡ଼ିଆ ଅକ୍ଷରମାନ ।

ଏ ପ୍ରଦର୍ଶିତ ରୀତି ଅନ୍ୟାନ୍ୟ ଅକ୍ଷର ଶିକ୍ଷା ସଙ୍ଗେ ସଙ୍ଗେ ବୁଝାଯିବ କି ପ୍ରତ୍ୟେକ ଅକ୍ଷର "O" ଅକ୍ଷର ମଧ୍ୟରେ ରଖାଯାଇ ପାରିବ ପୁଣି ଏ ରୀତି କପୋଳକଳ୍ପିତ ନୁହେ । ଏହାହିଁ ମାର୍ଜିତ ପୁରାତନ ରୀତି, ଯେହେତୁ ଚାଟଶାଳୀରେ ଗୁରୁମାନେ ପୂର୍ବ ପ୍ରଥମରେ ତିନି ଗୋଟି ଗୋଲାକାର କାଟି ତହିଁ ଉପରେ ବାଳକର ହସ୍ତ ସ୍ଥିର କରନ୍ତି ।

ଓଡ଼ିଆ ଅକ୍ଷର ସମସ୍ତ ନିମ୍ନଲିଖିତ କେତେ ଖଣ୍ଡ କାଠର ବା ମୋଟା କାଗଜର ଚକ୍ର ସାହାଯ୍ୟରେ ଅବଲୀଳା କ୍ରମେ ଶିକ୍ଷା ହୋଇ ପାରିବ, ପ୍ରତ୍ୟେକ ଅକ୍ଷର ଶିକ୍ଷା ରୀତି ସେ ସେ ଅକ୍ଷର ଶିକ୍ଷାଂଶରେ ଦିଆ ହୋଇଅଛି ।

ତିନି ଇଞ୍ଚ ବ୍ୟାସାର୍ଦ୍ଧର ଏକ ଚକ୍ର ।
ଦୁଇ ଇଞ୍ଚ ବ୍ୟାସାର୍ଦ୍ଧର ଦୁଇ ଚକ୍ର ।
ଦେଢ଼ ଇଞ୍ଚ ବ୍ୟାସାର୍ଦ୍ଧର ଦୁଇ ଚକ୍ର ।
ଏକ ଇଞ୍ଚ ବ୍ୟାସାର୍ଦ୍ଧର ଚାରି ଚକ୍ର ।
ଅଧ ଇଞ୍ଚ ବ୍ୟାସାର୍ଦ୍ଧର ଚାରି ଚକ୍ର ।

ଶିକ୍ଷକ ମହାଶୟ ଏହି କେତୋଟି ବୃତ୍ତ କାଗଜରେ କାଟି ନେବେ ।

ଶିକ୍ଷା ସ୍ତର—ଉପରୋକ୍ତ ଚକ୍ରମାନ କପର ଭାବରେ ବ୍ୟବହାର କରିବାକୁ ହେବ ତାହା ଏଥିରେ ପ୍ରଦତ୍ତ ହେଲା ।

ଅଭ୍ୟାସ ସ୍ତର—ସ୍କୁଲଗୃହର କୌଣସି ଏକ ସ୍ଥାନରେ ଏବଂ କାନ୍ଥ ନିକଟରେ ଏକ ଗଜଖଣ୍ଡ ବା ତାହାଠାରୁ କିଛି ବେଶି ପ୍ରସ୍ଥ ୩/୪ ଇଞ୍ଚ ଗଭୀର ଏବଂ ଗୃହର ସ୍ଥାନକୁ ଦେଖି ଏବଂ ଶିଶୁର ସଂଖ୍ୟାକୁ ଦେଖି ଗୋଟିଏ ଗର୍ତ୍ତ ଖୋଳିବାକୁ ହେବ । ବାଲିକୁ ସମତଳ କରି ତା ଉପରେ ଆବଶ୍ୟକୀୟ ଚକ୍ରମାନ ସ୍ଥାପନ କରି ତର୍ଜନୀ ଅଙ୍ଗୁଳିର ଅଗ୍ରରେ ଶିଶୁକୁ ଅକ୍ଷର ଲେଖାଇବାକୁ ହେବ ।

ଆବଶ୍ୟକ ହେଲେ ଆଦର୍ଶ ଦେଖାଇବା ସକାଶେ ମାଟି ବା କାଦୁଅରେ ପ୍ରତ୍ୟେକ ଅକ୍ଷର ଲେଖିବାକୁ ହେବ । ଅକ୍ଷରଗୁଡ଼ିକ ସୁନ୍ଦର ଏବଂ ସମାନୁପାତିକ ରହିବ । ଏହି ଆଦର୍ଶ ମାଟିର ଅକ୍ଷର ଶିଶୁର ଆଗରେ ରଖି ଦିଆଯିବ ।

ଏ ସ୍ତରରେ ହାତ ବସିଲେ ପ୍ରତ୍ୟେକ ଅକ୍ଷର ଶିକ୍ଷା ସଙ୍ଗେ ସଙ୍ଗେ ସେହି ଅକ୍ଷର ଚକ୍ରର ଚତୁର୍ଦ୍ଦିଗରେ ତେନ୍ତୁଳିମଞ୍ଜି, କଉଡ଼ି ବା ଗୋଡ଼ି ରଖି ଅକ୍ଷର ଶିକ୍ଷା ହେବ । କାଠି ସଜାଇବାର ତଦ୍ରୂପ ଭଲ ନୁହେ, ତହିଁରେ କେତେକ ଅକ୍ଷରର କେତେକ ଅଂଶ ପୂର୍ଣ୍ଣଭାବରେ ଲେଖା ଯାଇ ପାରିବ ନାହିଁ ଏବଂ କୋଣବିଶିଷ୍ଟ ରହିବ, ଏଣୁ କାଠି ସଜାଇ ଲେଖିବା ବିଧି ପରିତ୍ୟଜ୍ୟ । ଏଥିରେ ଶିଶୁର ଅକ୍ଷରଜ୍ଞାନ ଜନ୍ମିଲେ ଖଡ଼ିରେ ପରେ ସ୍ଲେଟ୍ ଓ ପେନ୍‌ସିଲରେ ଅଭ୍ୟାସ କରା ହେବ । ସର୍ବଶେଷରେ ଆବଶ୍ୟକ ବୋଧ ହେଲେ ଶିଶୁର କୌତୂହଳ ସକାଶେ ତାଳପତ୍ରରେ ଅକ୍ଷର ଆକୃତି ଛିଦ୍ର କରି ଛିଦ୍ରରେ ସୂତା ଗଳାଇ ଅକ୍ଷର ଲେଖିବା ଏବଂ ତାରରେ ଅକ୍ଷର ଲେଖିବାର ଅଭ୍ୟାସ କରାଯାଇ ପାରେ ।

୧ । ○ ଅକ୍ଷର ଶିକ୍ଷା ଦେବା ସକାଶେ ୩ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ତଳେ ରଖି ଶିକ୍ଷକ ନିଜେ ତହିଁ ଚାରିଅଡ଼େ ଗାର ବୁଲାଇବା ସଙ୍ଗେ ସଙ୍ଗେ

○ ○ ବୋଲୁଥିବେ ଏବଂ ଶିଶୁକୁ ତଦ୍ରୂପ କରିବାକୁ ଓ କହିବାକୁ ଆଦେଶ ଦେବେ । ଶିକ୍ଷା ପରେ ତେନ୍ତୁଳି ମଞ୍ଜିରେ ଅକ୍ଷର ଲେଖିବେ ।



୨ । ଠ ଶିକ୍ଷା ଦେବାପାଇଁ ତଳେ ୧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ଓ ତଦୁପରି ଦୁଇ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ଶିକ୍ଷକ ନିଜେ ଠ ଲେଖା ଆକାରରେ ଗାର ବୁଲାଇ ଠ ଠ କହୁଥିବେ ଏବଂ ତଦ୍ରୂପ ଶିଶୁକୁ କରିବାକୁ ଓ କହିବାକୁ ଆଦେଶ ଦେବେ ।



୩ । ର ଶିଖାଇବାପାଇଁ ତଳେ ୧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ତଦୁପରି ୨ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ସ୍ଥାପନ କରି ଶିକ୍ଷକ ଠ ଆକାରରେ ହାତ ବୁଲାଇ, ଲାଞ୍ଜଟିଏ ଲଗାଇ ର ର ବୋଲି ନିଜେ କହୁଥିବେ ଏବଂ ତଦ୍ରୂପ ଶିଶୁକୁ କରିବାକୁ ଓ କହିବାକୁ ଆଦେଶ ଦେବେ ।



ରଠ ଠର

୪ । ଗ ଶିକ୍ଷା ଦେବାପାଇଁ ୧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ଓ ତଦୁପରି ୨ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ସ୍ଥାପନ କରି ଶିକ୍ଷକ ଠ ଆକାରରେ ଲେଖି ଗ ଅକ୍ଷର ହେବା ଭଳି ବାଡ଼ି ଲେଖିବା ସଙ୍ଗେ ସଙ୍ଗେ ଗ ଗ ବୋଲି ଶିଶୁକୁ କରାଉଥିବେ ଓ କହୁଥିବେ ।



ଗ○ ○ଗ

୫ । ଝ ଅକ୍ଷର ଶିକ୍ଷା ସକାଶେ ତଳେ ୧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ଓ ତଦୁପରି ୨ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ସ୍ଥାପନ କରି ଟ ଲେଖିଲା ପରି କରି ମୁଣ୍ଡ ଅଡ଼କୁ ଏପରି ଗୋଟିଏ ବକ୍ର ଗାର ଝ ଲେଖା ଆକାରରେ ଦେବା ସଙ୍ଗେ ସଙ୍ଗେ ଝ ଝ ବୋଲି କହୁଥିବେ ଓ ଶିଶୁକୁ କୁହାଉଥିବେ ।



ଝର　　　　ରଝ

୬ । ଟ ଅକ୍ଷର ଶିକ୍ଷା ସକାଶେ ତଳେ ୧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ଓ ତଦୁପରି ୨ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ସ୍ଥାପନ କରି ଡ ଅକ୍ଷର ଲେଖିଲା ପରି ଗୋଟିଏ ସରଳ ଗାର ମୁଣ୍ଡ ଉପରକୁ ଦେବା ସଙ୍ଗେ ସଙ୍ଗେ ଟ ଟ ବୋଲି ଶିକ୍ଷକ କହୁଥିବେ ଏବଂ ବାଳକକୁ କହାଉଥିବେ, କହୁଥିବେ ।



ଝଟ　　　　ରଟ　　　　ଟଗର

୭ । ଡ ଅକ୍ଷର ଶିକ୍ଷା ସକାଶେ ତଳେ ୧ ଇଞ୍ଚ ବ୍ୟାସାର୍ଦ୍ଧ ଚକ୍ର ଓ ତଦୁପରି ୨ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ଏବଂ ୧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ସମ୍ମୁଖରେ ଓ ଆବଶ୍ୟକ ସ୍ଥାନରେ ଅଧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ରଖି ଡ ଲେଖିବା ସଙ୍ଗେ ସଙ୍ଗେ ଶିକ୍ଷକ ଡ ଡ କହି କହୁଥିବେ ଓ ବାଳକଙ୍କୁ କହାଉଥିବେ ।



ଗଡ　　　　ଡଗ

୮ । ଦୀର୍ଘ ଈ ନିମନ୍ତେ ୧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ସମ୍ମୁଖରେ ହ୍ରସ୍ୱ ଈ ପାଇଁକି ଯେପରି ଗୋଟିଏ ଅଧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ଆବଶ୍ୟକ ହେଉଥିଲା ଦୁଇ ଗୋଟି ଅଧ ଇଞ୍ଚର ଚକ୍ର ଆବଶ୍ୟକ ପଡ଼ିବ ।

# ଈ

୯ । ଘ ଅକ୍ଷର ଶିକ୍ଷା ସକାଶେ ୧ ଇଞ୍ଚ ବ୍ୟାସାର୍ଦ୍ଧ ଚକ୍ର ଉପରେ ½ ଇଞ୍ଚ ବ୍ୟାସାର୍ଦ୍ଧ ଚକ୍ର ରଖି ଉପରସ୍ଥ ଚକ୍ରର ଆବଶ୍ୟକ ସ୍ଥାନ ପର୍ଯ୍ୟନ୍ତ ଗାର ନେଇ ½ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ଅନ୍ତର କରି ଆବଶ୍ୟକ ସ୍ଥାନରେ ଗୋଟିଏ ଅଧ ଇଞ୍ଚ ଚକ୍ର ରଖି ଅଧ ଇଞ୍ଚ ଚକ୍ରର ତଳ ଦିଗକୁ ଗାର ନେଇ ଗୋଟିଏ ବାଡ଼ି ଦେବା ସଙ୍ଗେ ସଙ୍ଗେ ଶିକ୍ଷକ ଘ ଘ ବୋଲୁଥିବେ ଏବଂ ଶିଶୁକୁ କୁହାଉଥିବେ ।

# ଘ

ଘର ରଘୁ ଖଗ ଘଟ ଘଟର

୧୦ । ଘ ଶିକ୍ଷା ଦେବା ସକାଶେ ୧ ଇଞ୍ଚ ଚକ୍ର ତା ଉପରେ ¾ ଇଞ୍ଚ ଚକ୍ର, ତା ଉପରେ ଅଧ ଇଞ୍ଚ ଚକ୍ର ଏକ ଉପରେ ଏକ ରଖି (ଡାଲିମ୍ବ) ଘ ଆକାରରେ ଗାର କାଟି ଗୋଟିଏ ବାଡ଼ି ଦେବା ସଙ୍ଗେ ସଙ୍ଗେ ଶିକ୍ଷକ ଘ ଘ ବୋଲୁଥିବେ ଏବଂ ଶିଶୁକୁ ବୋଲାଉଥିବେ ଓ କରାଉଥିବେ ।

# ଙ

ଶଠ

୧୧ । ଙ ଶିଖାଇବା ସକାଶେ ଙ ଖଣ୍ଡ ଅବଲମ୍ବନ କରି ୧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର, ¾ ଇଞ୍ଚ ବ୍ୟାସାର୍ଦ୍ଧ ଚକ୍ର ଓ ଅଧ ଇଞ୍ଚ ବ୍ୟାସାର୍ଦ୍ଧ ଚକ୍ର

ଏକ ଉପରେ ଏକ ରଖି ଣ ଲେଖା ଅକ୍ଷରରେ ଗାର କାଟି ବାଡ଼ି ଦେବା ସଙ୍ଗେ ସଙ୍ଗେ ଶିକ୍ଷକ ଣ ଣ ବୋଲୁଥିବେ ଏବଂ ଶିଶୁକୁ କରାଉଥିବେ ।

# ଣ

ଶଣ    ଚରଣ    ଝରଣ    ଶରଣ    ଗଣ

୧୨ । ଇ ଶିକ୍ଷା ଦେବା ସକାଶେ ଅଧ ଇଞ୍ଚର ଦୁଇ ଗୋଟି ଚକ୍ର ତଳେ ପାଖକୁ ପାଖ ରଖି ତା ଉପରେ ଗୋଟିଏ ୨ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ରଖି ଲେଖିବା ସଙ୍ଗେ ସଙ୍ଗେ ଇ ଇ ବୋଲିବାକୁ ହେବ ଏବଂ ଶିଶୁକୁ କରାଇବାକୁ ହେବ ।

# ଇ

ଖଇ    ଖଇର

୧୩ । (ଦୀର୍ଘ) ଈ ଲେଖା ସକାଶେ ହ୍ରସ୍ୱ ଇ ଲେଖି ହ୍ରସ୍ୱ ଇର ପେଟରେ ଗୋଟିଏ ପେଟ ଦେବା ସକାଶେ ଅଧ ଇଞ୍ଚ ବ୍ୟାସାର୍ଦ୍ଧର ଗୋଟିଏ ଚକ୍ର ରଖି, ଆବଶ୍ୟକମତେ ଈ ଲେଖିବା ସଙ୍ଗେ ସଙ୍ଗେ ଶିକ୍ଷକ ଈ ଈ ବୋଲି ଶିଶୁକୁ କରାଉଥିବେ ।

# ଈ

୧୪ । ଂ ( ଅନୁସ୍ୱାର ), ଃ ( ବିସର୍ଗ ), ଁ ( ଚନ୍ଦ୍ରବିନ୍ଦୁ ) ଅଧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ବ୍ୟବହାର କରି ଏହି ସବୁକୁ ପୃଥକ୍ ପୃଥକ୍ ଶିକ୍ଷା ଦେବାକୁ ହେବ ।

୧୫ । ଉ ଶିଖାଇବାକୁ ହେଲେ ଅଧ ଇଞ୍ଚ ବ୍ୟାସାର୍ଦ୍ଧର ଦୁଇ ଚକ୍ର ତା ଉପରେ ୧ ଇଞ୍ଚ ବ୍ୟାସାର୍ଦ୍ଧର ଗୋଟିଏ ଚକ୍ର ଓ ତା ଉପରେ [illegible]

ବ୍ୟାସାର୍ଦ୍ଧର ଗୋଟିଏ ଚକ୍ର ସ୍ଥାପନ କରି ପ୍ରଥମରେ ୧ ଇଞ୍ଚ ଓ ୧½ ଇଞ୍ଚ ଚକ୍ର ବ୍ୟବହାର ପରେ ଛନ୍ଦଗା ଲେଖିବାକୁ ଅଧ ଇଞ୍ଚ ବ୍ୟାସାର୍ଦ୍ଧର ଦୁଇ ଚକ୍ର ବ୍ୟବହାର କରିବା ସଙ୍ଗେ ସଙ୍ଗେ ଶିକ୍ଷକ ଛ ଛ ବୋଲୁଥିବେ ଓ ଶିଶୁକୁ ଭଣାଉଥିବେ ।



ଗଛ

୧୬ । ୧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ତଳେ ରଖି ଏହି ଚକ୍ରର କେନ୍ଦ୍ର- ଠାରୁ ଆରମ୍ଭ କରି ୨ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ତା ଉପରେ ରଖି ଦ ଆକାରରେ ଅକ୍ଷର ଲେଖିବାବେଳେ ୧ ଇଞ୍ଚ ବ୍ୟାସାର୍ଦ୍ଧ ଚକ୍ର ଆଡରେ ଗୋଟିଏ ଗାର ଦେଇ ଅନ୍ୟ ଚକ୍ରରେ ଗାରକୁ ବୁଲାଇବା ସଙ୍ଗେ ସଙ୍ଗେ ଶିକ୍ଷକ ଦ କହି କହି ଶିଶୁକୁ ଲେଖାଉଥିବେ ଓ କୁହାଉଥିବେ । ଏଠାରେ ଏହା ମନେ ରଖିବାକୁ ହେବ ଯେ, ୧ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ରର କେନ୍ଦ୍ରଠାରୁ ଉପର କେତେକ ଅଂଶ ୨ ଇଞ୍ଚ ଚକ୍ର ବ୍ୟାସାର୍ଦ୍ଧର ଏମନ୍ତ ଅନ୍ତରାଳରେ ରହିବ ଯେମନ୍ତ ତଳ ଚକ୍ରର ଆକାର ଉପରକୁ ସମ୍ପୂର୍ଣ୍ଣ ଗୋଲ ନ ଦିଶି ଶୁକ୍ଳ ପକ୍ଷର ଏକାଦଶୀ କମ୍ବା ଦ୍ୱାଦଶୀର ଚନ୍ଦ୍ରପରି ଦିଶିବ ।



ଗଦ ଗଦଗଦ ଦର ଦଛ

୧୭ । ବ ଶିକ୍ଷା ସକାଶେ ଦ ସ୍ୱତ୍ତ ଅବଲମ୍ବନ କରି ଦ ତଳ ପୁଚ୍ଛଆ ଭିତରେ ଗାର ବ ଅକ୍ଷର ଲେଖିବା ସଙ୍ଗେ ସଙ୍ଗେ ବ ବ ଶିଶୁକୁ କୁହାଇବାକୁ ଓ କରାଇବାକୁ ହେବ । ଏଠାରେ ଏହା ବୁଝିବାକୁ ହେବ ଯେ ଦ ରେ ଉଭୟ ପରିଧିର ସନ୍ଧିସ୍ଥାନରୁ ସନ୍ଧିସ୍ଥାନକୁ ଗାର ବୁଲାଇବାକୁ ହୋଇ- ଥିଲା, ଏଠାରେ ବଡ଼ ଚକ୍ରର ସମ୍ପୂର୍ଣ୍ଣ ମଣ୍ଡଳ ବୁଲାଇବାକୁ ହେବ ।

# ବ

ରଖ ଖବର ରବ ବର ଖର ଦର ଚର

ଶର ଝର ବସ ବଦ ବଟ ବଗ ବଚ

୧୮ । ହ ଅକ୍ଷର ଲେଖିବା ସକାଶେ ଦ ସ୍ତମ୍ଭ ଅବଲମ୍ବନ କରି ତଳେ ଆବଶ୍ୟକ ସ୍ଥାନରେ ହ ର ବିଶେଷ ଚିହ୍ନ ଦେବାକୁ ହେବ । ଏ କାର୍ଯ୍ୟ କରୁ କରୁ ଶିକ୍ଷକ କହୁଥିବେ ଓ ଶିଶୁଙ୍କୁ କରାଉଥିବେ ।

# ହ

ଗହଣ ହଟ ହଂ ହର ରହ ହରଣ

୧୯ । କ ଅଧ ଇଞ୍ଚ ବ୍ୟାସାର୍ଦ୍ଧର ବୃତ୍ତ ଚକ୍ର ତଦୁପରି ୨ ଇଞ୍ଚ ବ୍ୟାସାର୍ଦ୍ଧର ଚକ୍ର ସ୍ଥାପନ କରି ଆବଶ୍ୟକମତେ କ ଲେଖି ଶିକ୍ଷକ କ କହି ଶିଶୁଙ୍କୁ କରାଇବେ ଓ ଲେଖାଇବେ ।

# କ

କଇଁଛ କଟକ ଚଟକ କଚ କଟ କର

କରକଟ କରଣ କବଚ କରଦ ତଣ୍ଡକ

ଗଣକ ଚରକ ଝଟକ ଟକ ଠକ ଦଂଶକ

ଦକ ପଦକ ରଚକ ବକ

୨୦ । ପ ଲେଖିବାକୁ ହେଲେ ୨ ଇଞ୍ଚ ବ୍ୟାସାର୍ଦ୍ଧର ବୃତ୍ତ ଗୋଟି ଚକ୍ର ଆଗ ପଛ କରି ଏପରିଭାବରେ ରଖିବାକୁ ହେବ ଯେମନ୍ତ ପରସ୍ପରର ବ୍ୟାସ ପରସ୍ପରର କେନ୍ଦ୍ରକୁ ସ୍ପର୍ଶ କରୁଥିବ । ପ ଆକାରରେ ଲେଖି ସମ୍ପୂର୍ଣ୍ଣରେ

